# ଧୂଆଁ ପତ୍ର



ଡାକ୍ତର ରାଧାଚରଣ ପଣ୍ଡା,
ଏଲ୍. ଏମ୍. ପି.

ପ୍ରକାଶକ
ସବୁଜ ସାହିତ୍ୟ ସମିତି
କଟକ

ମୂଲ୍ୟ ଏକ ଅଣା

# ଧୂଆଁପତ୍ର



**ପରିଚୟ**—ଏକଜାତୀୟ ଜଙ୍ଗଲି ଗଛର ପତ୍ରକୁ 'ଧୂଆଁପତ୍ର' କୁହାଯାଏ । ଅଜିକାଲି ଭାରତ ତଥା ପୃଥିବୀର ଅନେକ ଦେଶବାସୀ ଏହି ଗଛର ଚାଷ କରନ୍ତି ଏବଂ ପୃଥିବୀର ଅର୍ଦ୍ଧାଧିକ ଲୋକ ଧୂଆଁପତ୍ରକୁ ପିକା, ହୁକ୍କା, ବିଡ଼ି, ନାସ, ଗୁଣ୍ଡି, ଚୂନପତ୍ର ଓ ଗୁଡ଼ାଖୁ କରି ଖାନ୍ତି ବା ବ୍ୟବହାର କରନ୍ତି ।

**ଇତିହାସ**—ପ୍ରାୟ ତିନି ଶତ ବର୍ଷ ପୂର୍ବେ 'ଇଷ୍ଟଇଣ୍ଡିଆ କମ୍ପାନୀ' ଭାରତକୁ ଆସିବା ପୂର୍ବରୁ ଆମଦେଶରେ ଧୂଆଁପତ୍ରର ବ୍ୟବହାର ଆଦୌ ନ ଥିଲା, କି ଧୂଆଁଗଛ ଏ ଦେଶରେ ମିଳୁ ନ ଥିଲା । ଧୂଆଁଗଛର ଜନ୍ମସ୍ଥାନ ହେଉଛି ଉତ୍ତର ଆମେରିକାସ୍ଥ ଯୁକ୍ତରାଷ୍ଟ୍ରର 'ଭର୍ଜୀନିୟା' ( Virginia ) ରାଜ୍ୟ । ସେଥିପାଇଁ ଧୂଆଁପତ୍ରକୁ ପୂର୍ବେ 'ଭର୍ଜୀନିୟା ଟୋବାକୋ' କହୁଥିଲେ । ସେହି ରାଜ୍ୟର ଆଦିମ ଅଧିବାସୀମାନେ କେବଳ

ପର୍ବପର୍ବାଣି ଓ ଅତିଥିଚର୍ଚ୍ଚାପାଇଁ ଏହାକୁ ବ୍ୟବହାର କରୁଥିଲେ । ୧୫୮୪ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡ ରାଣୀ ଏଲିଜାବେଥଙ୍କଠାରୁ ସାହାଯ୍ୟ ପାଇ ସାର୍ ୱାଲ୍ଟର ରାଲେ ଏହି ଭର୍ଜିନିଆ ରାଜ୍ୟ ଅଧିକାର କରି ସେଠାରୁ ଆଳୁ (ଗୋଲ ଆଳୁ) ଓ ଧୂଆଁ ଗଛ ନେଇ ଇଂଲଣ୍ଡରେ ଚାଷ କରିଥିଲେ । ପରେ 'ଇଷ୍ଟଇଣ୍ଡିଆ କମ୍ପାନୀ'ର ଜଣେ ପ୍ରଧାନ ନାୟକ ସାର୍ ଥୋମାସ୍ ରୋ କେତେକ ଉପଢୌକନ ସହ ଧୂଆଁପତ୍ରକୁ ନେଇ ଭାରତର ତତ୍କାଳୀନ ଦିଲ୍ଲୀ ବାଦଶା ଜାହାଙ୍ଗୀରଙ୍କୁ ଭେଟିଥିଲେ । ଜାହାଙ୍ଗୀର ଏହି ପତ୍ରକୁ ପାଇ ତଦ୍ୱାର 'ହୁକ୍କା' ଓ 'ପିକା' କରି ପ୍ରଥମେ ଖାଇଥିଲେ ! ସଙ୍ଗେ ସଙ୍ଗେ ଏହି ଗଛର ଚାଷ କରିବାପାଇଁ ନିଜ ପ୍ରଜାମାନଙ୍କୁ ଉପଦେଶ ଦେଇ-ଥିଲେ । ଇତି ମଧ୍ୟରେ ୟୁରୋପ ଓ ପୃଥିବୀର ଅନ୍ୟାନ୍ୟ ଦେଶର ଲୋକମାନେ ଧୂଆଁପତ୍ରର ବିଶେଷ ପରିଚୟ ପାଇ ତହିଁର ସଦ୍‌ବ୍ୟବହାର କରିବାପାଇଁ ବିଶେଷ ଚେଷ୍ଟା କଲେ !

ଦିଲ୍ଲୀବାଦଶାଙ୍କଠାରୁ ଉତ୍ସାହ ପାଇବା ପରେ ଇଂରେଜ ବଣିକ୍‌ମାନେ ଧୂଆଁପତ୍ର ଓ ଧୂଆଁମଞ୍ଜି ଆଣି ଭାରତର ବିଭିନ୍ନାଞ୍ଚଳରେ ଧୂଆଁ ଚାଷ କରିବା ଯୋଗାଡ଼ କଲେ । ଆମ ଓଡ଼ିଶାରେ ଇଂରେଜ-

୩ । **ମୋତିହାରୀ ପତ୍ର**—ଏଗୁଡିକ ଅତି ବଡ଼ ଓ ଅତି କଡ଼ା ଉତ୍ପନ୍ନ । ସମ୍ଭବତଃ ପୂର୍ବେ ବଙ୍ଗଳାରେ ଥିବା ମୋତିହାରୀ ଜିଲ୍ଲାରୁ ପ୍ରଥମେ ଆମଦାନୀ ହୋଇ ଥିବାରୁ ଏଇ ପତ୍ରର ନାମ "ମୋତିହାରୀ ପତ୍ର" ହୋଇଛି ।

## ବ୍ୟବହାର

ଓଡ଼ିଶାରେ ଧୂଆଁ ପତ୍ରର ନିମ୍ନ କେତେକ ପ୍ରକାର ବ୍ୟବହାର ଦେଖାଯାଏ ।

(୧) **ଗୁଣ୍ଡି ବା ମସଲା**—ଦେଶୀ ଧୂଆଁ-ପତ୍ର ସଙ୍ଗେ **ବାଇଗଣୀ** ବା ମୋତିହାରୀ ପତ୍ର ସମଭାଗ ମିଶାଇ, ସାମାନ୍ୟ ଗରମ କଲା ପରେ ତହିଁରେ ଧନିଆ, ଜଳାଜିରା, ପାନମହୁରୀ ପ୍ରଭୃତି ହେଉଥିତ ଜିନିଷ ମିଶାଇ ଗୁଣ୍ଡ କରନ୍ତି । ଏହି ଗୁଣ୍ଡକୁ "ଗୁଣ୍ଡି" ବା "ମସଲା" କୁହାଯାଏ । କେତେକ ସୌଖିନ ଲୋକ ଏଥିରେ ଚୂଆ, ଅତର ପ୍ରଭୃତି ସୁବାସିତ ତେଲ ମଧ୍ୟ ମିଶାନ୍ତି । ଗଞ୍ଜାମରେ "ବ୍ରହ୍ମପୁର ମସଲା"ର ପ୍ରଶଂସା ଜନସାଧାରଣ କରୁ-ଥିବାର "ଗୁଣ୍ଡି" ସେବୀମାନଙ୍କ ଭୁଣ୍ଡରୁ ଶୁଣାଯାଏ । ଅଧିକାଂଶ ଲୋକ ଏହି ଗୁଣ୍ଡିକୁ ପାନ ସଙ୍ଗେ ଖାଆନ୍ତି । ନିଗୁଣ୍ଡିଆ ପାନର ଭକ୍ତ ସଂଖ୍ୟା ଓଡ଼ିଶାରେ କ୍ୱଚିତ୍ ଦେଖାଯାଆନ୍ତି । ଅଭାବରେ ଏହି ଗୁଣ୍ଡି ସଙ୍ଗେ ଟିକିଏ ଚୂନ ମିଶାଇ କେତେକ ଲୋକ "ଚୂନ ପତ୍ର" କରି ଖାଆନ୍ତି ।

(୨) ଚୂନପତ୍ର—ମୋଉଦାଣ୍ଡି କିମ୍ବା ବାଇଗଣୀ ପତ୍ରର ଗୁଣ୍ଡ ସଙ୍ଗେ ସାମାନ୍ୟ ଚୂନ ମିଶାଇ 'ଚୂନପତ୍ର' ତିଆରି ହୁଏ । ଓଡ଼ିଶାର ଅର୍ଦ୍ଧାଧିକ ଆବାଲବୃଦ୍ଧବନିତା ଏହି 'ଚୂନପତ୍ର'ର ପ୍ରଧାନ ଉପାସକ ଅଟନ୍ତି । ଶିକ୍ଷିତ ବାବୁମାନେ ଝାଡ଼ାଫେରି ଯିବା ସମୟରେ ମେଞ୍ଚାଏ ଗୁଡ଼ାଖୁ ନେଇ ଦାନ୍ତରେ ଯେପରି ଘସନ୍ତି, ଅନ୍ୟମାନେ ଠିକ୍ ସେହିପରି ଟିପେ ଚୂନପତ୍ର ତୁଣ୍ଡରେ ପୂରାଇ ଝାଡ଼ାଫେରି ଯାଆନ୍ତି ! ଏହା ବ୍ୟତୀତ ଓଡ଼ିଶାର ମୂଲିଆ, ବ୍ୟବସାୟୀ, ବାଟେଚାଲି ପ୍ରଭୃତି ( ସ୍ତ୍ରୀ ଓ ପୁରୁଷ) ନିଜର ଦୈନିକ କାର୍ଯ୍ୟ କରିବା ପୂର୍ବରୁ ନିଜର ପିନ୍ଧା ଲୁଗାର କାନିରେ ଗଣ୍ଠାଏ ଧୂଆଁପତ୍ର ଗୁଣ୍ଡ ଓ ଚୂନ ବାନ୍ଧି କାର୍ଯ୍ୟରେ ଯୋଗଦିଅନ୍ତି । କାର୍ଯ୍ୟ କରୁଁ କରୁଁ ମୂଲିଆମାନେ ଏହି ଚୂନପତ୍ରରୁ ଟିପାଏ ପାଟିରେ ପକାନ୍ତି । ଅନେକ ସମୟରେ, କେବଳ ଏହି ଚୂନପତ୍ର ଅଭାବରେ ସେମାନେ ନିର୍ଦ୍ଦିଷ୍ଟ କାର୍ଯ୍ୟ କରି ପାରନ୍ତି ନାହିଁ ! ଗୁଣ୍ଡି ପରି ଚୂନପତ୍ରର ସଦ୍‌ବ୍ୟବହାର ଆମ ଦେଶର ଅନେକ ନବ୍ୟ ଶିକ୍ଷିତ (ଉଚ୍ଚଶିକ୍ଷିତ) ଯୁବକ ଓ ବାବୁମାନେ ମଧ୍ୟ କରନ୍ତି !

(୩) ଦାନ୍ତଘଷା ଗୁଡ଼ାଖୁ—ଆଜିକାଲି ଓଡ଼ିଶା ଓ ଗଞ୍ଜାମର ଅର୍ଦ୍ଧାଧିକ ଶିକ୍ଷିତ ଲୋକ

ଦାନ୍ତଘଷା ପାଇଁ ଏବଂ ଝାଡ଼ାଫେର ଯିବା ପୂର୍ବରୁ ଦାନ୍ତରେ ମେଞ୍ଚାଏ ଗୁଡ଼ାଖୁ ଘଷନ୍ତି । ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ କି ଦିନ ମଧ୍ୟରେ ଚାରି ଥର ଗୁଡ଼ାଖୁ ଘଷନ୍ତି । ଏହି ଗୁଡ଼ାଖୁ ତିଆରି କରିବାପାଇଁ ଧୂଆଁପତ୍ର ଗୋଟିଏ ପ୍ରଧାନ ଉପାଦାନ ହୁଏ । ଧୂଆଁପତ୍ର ବ୍ୟତୀତ ସେଥିରେ ଚୂନ, ପୁରୁଣା ଗୁଡ଼, ପାଚିଲା କଦଳୀର ଚୋପା ପ୍ରଭୃତି ମିଶେ । ଏଇ ସମ୍ମିଶ୍ରଣକୁ କେତେକ ଦିନ ଗୋଟିଏ ଗାତରେ ପୋତି ଦିଆଯାଏ । ପରେ ସେଗୁଡ଼ିକୁ ଉତ୍ତମରୂପେ ଚକଟା ଯାଏ । ଏପରି ଚକଟିବା ସମୟରେ ସେଥିରେ ଝିଟିପିଟି, ଅସରପା ପ୍ରଭୃତି କେତେକ ଜୀବ ମଧ୍ୟ ଚକଟି ହୁଅନ୍ତି । ଏପରି ପ୍ରସ୍ତୁତ ଗୁଡ଼ାଖୁ ଆମ ଦେଶବାସୀଙ୍କର ଗୋଟିଏ ପ୍ରଧାନ ଦୈନିକ ବ୍ୟବହାର୍ଯ୍ୟ ସାମଗ୍ରୀ ହୋଇଛି ।

(୪) **ହୁକା ଗୁଡ଼ାଖୁ**—ହୁକାଦ୍ୱାରା ଧୂଆଁପତ୍ର ଖାଇବା ପ୍ରଥା ଭାରତରେ ମୋଗଲ ବାଦଶାମାନଙ୍କ କାଳରୁ ଚାଲି ଆସୁଛି । ଆଜିକାଲି ମୋଗଲ ଓ ପଠାଣଙ୍କ ବ୍ୟତୀତ ବଙ୍ଗାଳୀ ଓ ଓଡ଼ିଆମାନେ ମଧ୍ୟ ଏହି ପ୍ରଣାଳୀରେ ଧୂଆଁପତ୍ର ଖାଇବା ଅଭ୍ୟାସ କରନ୍ତି ! ଏଥିପାଇଁ ଯେଉଁ 'ଗୁଡ଼ାଖୁ' ତିଆରି ହୁଏ, ସେଥିରେ ଧୂଆଁପତ୍ର ଛଡ଼ା ଗୁଡ଼ (ଅଖାଗୁଡ଼କୁ କିଛିଦିନ ରଖିବା ପରେ ତହିଁରୁ ଯେଉଁ ରସ

ବାହାରେ ତାହାକୁ 'ଛିଟା ଗୁଡ଼' କହନ୍ତି ) ଓ କେତେକ ମସଲା ( ଲବଙ୍ଗ, ଅଳାଇଚ ଜାଇଫଳ ପ୍ରଭୃତି ) ମିଶେ । ଏହି ଗୁଡ଼ାଖୁରୁ ମୋଟାଏ ହୁକାରେ ଦେଇ ତା' ଉପରେ 'ଟିକିଆ' (*) ନିଆଁ ରଖି ହୁକାର ଧୂଆଁ ପିଆଯାଏ । ଅଧୁନାଲି ଏହି ପ୍ରଣାଳୀରେ ଧୂଆଁପତ୍ର ଖାଇବା ପ୍ରଥା ଓଡ଼ିଶାର କେତେକ ସହରୀବାବୁମାନଙ୍କଠାରେ ଦେଖାଯାଏ ।

(୬) **ନାସ**—ଦେଶୀ ଧୂଆଁପତ୍ରକୁ ସାମାନ୍ୟ ଗରମ କରି ତହିଁରେ ଚୂନ ଓ ସାମାନ୍ୟ ତେଲ ମିଶାଇ ନାସ ତିଆରି ହୁଏ । କେତେକ ଲୋକ ଏହି ନାସରେ ଅତର, ଚନ୍ଦନ, କର୍ପୂର ପ୍ରଭୃତି ସୁବାସିତ ପଦାର୍ଥ ମଧ୍ୟ ମିଶାନ୍ତି । ଓଡ଼ିଶାର ପ୍ରାୟ ସବୁ ବ୍ରାହ୍ମଣ ଶାସନରେ ନାସର ବିଶେଷ 'ସଦ୍‌ବ୍ୟବହାର' ହେଉଥିବାର ଜଣାଯାଏ । ଏହି ଶାସନୀ ବ୍ରାହ୍ମଣ-ମାନଙ୍କ ମଧ୍ୟରୁ ଅନେକେ ଲୋକ ନାସକୁ ଶୁଙ୍ଘନ୍ତି ଏବଂ ଖାନ୍ତି । ଟିପାଏ ନାସ ତୁଣ୍ଡରେ ନ ପକାଇଲେ ଅନେକ ଲୋକ ନିଜର କାର୍ଯ୍ୟ କରି ପାରନ୍ତି ନାହିଁ !

---

(*) 'ଟିକିଆ' = ସୋରିଷ ଓ ଅନ୍ୟ କଣ୍ଟା ଗଛର ପୋଡ଼ା ଦହୁଁର ପାଉଁଶ ଗୋବର ସଙ୍ଗେ ମିଶାଇ ଛୋଟ ଛୋଟ ବଟିକା ପକାଯାଏ । ଏହି ବଟିକାର ନିଆଁକୁ 'ଟିକିଆ ନିଆଁ' କହନ୍ତି

(୬) ପିକା—ଧୂଆଁପତ୍ରକୁ ପିକା କରି ଖିଆଯାଏ । କିନ୍ତୁ ଓଡ଼ିଶାରେ ଅତି କମ୍ ଲୋକ ଏହି ପ୍ରଣାଳୀରେ ଧୂଆଁପତ୍ରକୁ ଖାନ୍ତି । ଯେଉଁମାନେ ଗଞ୍ଜା ଓ ଭାଙ୍ଗ ପ୍ରଭୃତି ଖାନ୍ତି, ସେମାନଙ୍କଠାରେ ପିକା ଦେଖାଯାଏ । ପିକାରୁ ଖଣ୍ଡିଏ କାଢ଼ି ଗଞ୍ଜାଇ ସଙ୍ଗେ ମିଶାଇ ମର୍ଦ୍ଦନ କରି ଖାନ୍ତି କିମ୍ବା ଭାଙ୍ଗରେ ଘୋଟି ପିଅନ୍ତି । ଯେଉଁମାନେ ପୂର୍ବରୁ ଚୂନପତ୍ର ତିଆରି କରନ୍ତି ନାହିଁ, ସେମାନଙ୍କ-ଠାରେ ମଧ୍ୟ ପିକା ଦେଖାଯାଏ । ସେହି ପିକାରୁ ଖଣ୍ଡେ କାଢ଼ି ତହିଁ ସଙ୍ଗେ ଚୂନ ମିଶାଇ ମର୍ଦ୍ଦନ କରି ଚୂନପତ୍ରର ଅଭାବ ଦୂର କରନ୍ତି !

(୭) ବିଡ଼ି—କେତେକ ଲୋକ କଢ଼ିପତ୍ର (କେନ୍ଦୁପତ୍ର) ରେ ଧୂଆଁପତ୍ରକୁ ପୁରାଇ 'ବିଡ଼ି' କରି ଖାନ୍ତି । କିନ୍ତୁ ଆଜିକାଲି ବଜାରରେ ଅତି ଶସ୍ତା ରକମ ବିଡ଼ି ମିଳୁଥିବାରୁ ଅତି ଅଳ୍ପ ଲୋକ ଏହି ପ୍ରଣାଳୀରେ ଧୂଆଁପତ୍ରକୁ ଖାନ୍ତି ।

(୮) ଅଉ କେତେକ ଲୋକ, ବିଶେଷତଃ ହାଡ଼ି, ଡମ, ଓ ପାଣ ପ୍ରଭୃତି ନୀଚ ଜାତିର ଲୋକମାନେ ଧୂଆଁପତ୍ରକୁ ସେହିପରି ଚୋବାଇ ଖାନ୍ତି । ସେମାନଙ୍କ ଅଣ୍ଟାରେ ଧୂଆଁପତ୍ର ସର୍ବଦା ଗଞ୍ଜିତ ଥାଏ ।

**ଉପକାରିତା**—ଯେ କୌଣସି ପ୍ରଣାଳୀରେ ହେଉ ଧୂଆଁପତ୍ର ଖାଇବାଦ୍ୱାରା ଆମ୍ଭମାନଙ୍କର ଉପକାର କଣ ? ଏହି ପ୍ରଶ୍ନର ସନ୍ତୋଷଜନକ ଉତ୍ତର କୌଣସି ଲୋକଠାରୁ ଅବା କୌଣସି ଚିକିତ୍ସାଶାସ୍ତ୍ରରୁ ଏ ପର୍ଯ୍ୟନ୍ତ ପାଇ ନାହୁଁ । ପ୍ରାଚୀନ କାଳରେ କେତେକ ଡାକ୍ତର ଧୂଆଁପତ୍ରର ସିଝା ପାଣି ( କ୍ୱାଥ ବା କଷାୟ ) ରୋଗୀମାନଙ୍କ ମଳଦ୍ୱାରରେ ପିଚକାରୀ (ଏନିମା) ଦେବାପାଇଁ ବ୍ୟବହାର କରୁଥିଲେ, କିନ୍ତୁ ତଦ୍ୱାରା ରୋଗୀର ମୃତ୍ୟୁ ଘଟିବାରୁ ସେ ଚିକିତ୍ସା ଏକାବେଳକେ ବନ୍ଦ କଲେ । ପାଶ୍ଚାତ୍ୟ ଚିକିତ୍ସାଶାସ୍ତ୍ରରେ ଧୂଆଁପତ୍ରର ଗୋଟିଏ ମାତ୍ର ଉପକାର ଥିବା କଥିତ ଅଛି—ଯେଉଁ ଲୋକମାନେ ବାରମ୍ବାର ମଳବଦ୍ଧ ବା କୋଷ୍ଠବଦ୍ଧ (Constipation) ରୋଗରେ ପୀଡ଼ିତ ହୁଅନ୍ତି, ସେମାନେ ଝାଡ଼ାଫେର ଯିବା ପୂର୍ବରୁ ଦିନେ ଅବା ଦୁଇଦିନ ଧୂଆଁପତ୍ରର ପିକା ଖାଇଲେ ସେମାନଙ୍କର ଝାଡ଼ା ସଫା ହୁଏ । କିନ୍ତୁ ଏତିକି ମନେ ରଖିବାକୁ ହେବ ଯେ, ଝାଡ଼ା ସଫା ମାତ୍ରେ ଧୂମ୍ରପାନ ବନ୍ଦ କରିବାକୁ ହେବ । ତା ନ ହେଲେ ସେମାନଙ୍କୁ ଧୂଆଁପତ୍ରର ଗୋଟିଏ ପ୍ରଧାନ ଭକ୍ତ ହେବାକୁ ପଡ଼ିବ ଓ ତଦ୍ୱାରା ସେମାନଙ୍କୁ ଗୋଟିଏ ମାରାତ୍ମକ ନିଶାର ବଶବର୍ତ୍ତୀ ହେବାକୁ ହେବ ।

**ଅପକାର**—ଧୂଆଁପତ୍ରର ବିଶେଷ ପରିଚୟ ଉପରେ ବର୍ଣ୍ଣିତ ହେଲା । ବର୍ତ୍ତମାନ ଏହାକୁ ଖାଇବା ଦ୍ୱାରା ଆମ୍ଭମାନଙ୍କର କି କି ଆର୍ଥିକ, ସାମାଜିକ ଓ ଶାରୀରିକ ଅବନତି ଘଟୁଛି, ତା ନିମ୍ନରେ ବର୍ଣ୍ଣିତ ହେଲା .—

ଧୂଆଁପତ୍ରରେ 'ନିକୋଟିନ୍' (Nicotine) ନାମକ ଏକ ବିଷାକ୍ତ ପଦାର୍ଥ ଅଛି । ଡାକ୍ତର ହେଲ୍ ହ୍ୱାଇଟ୍ କହନ୍ତି, 'ନିକୋଟିନ୍' ଗୋଟିଏ ଅତି ଭୟାନକ ଓ ମାରାତ୍ମକ ବିଷ' । (*) ଏହି ବିଷ ମନୁଷ୍ୟ ଦେହର ସ୍ନାୟୁ (Nerves) ଦେଇ ବ୍ୟାପେ । ଧୂମ୍ରପାନର ପ୍ରଥମାବସ୍ଥାରେ ଦେହର ସ୍ନାୟୁଗୁଡିକ ଉତ୍ତେଜିତ ହୁଏ (Stimulated) । ତଦ୍ୱାରା ଭୁଣ୍ଡରୁ ଅଧିକ ପରିମାଣ ଲାଳ, ଆଖିରୁ ଲୁହ, ଦେହରୁ ଝାଳ ଓ ପରିସ୍ରା ପ୍ରଭୃତି ବହେ । କିନ୍ତୁ ଅଳ୍ପ କେତେକ ଦିନ ପରେ ଏହି ସ୍ନାୟୁଗୁଡ଼ିକ ଦୁର୍ବଳ ହୁଏ । ତେଣୁ ଦେହର ପ୍ରତ୍ୟେକ ଭାଗର କାର୍ଯ୍ୟକ୍ରମ ବଦଳିଯାଏ ବା ମାନ୍ଦା ହୁଏ । ଧୂମ୍ରପାନ ବା ଗୁଡ଼ାଖୁ, ଚିନିପତ୍ର, ଗୁଣ୍ଡି ଓ ବିଡ଼ି ପ୍ରଭୃତି

---

(*)"Nicotine is one of the most powerful and rapid poisons known' P. 425, Dr Hale White's" Materia medica".

ବ୍ୟବହାର କଲେ ଯଥାକ୍ରମେ ଦେହର ଯେ ଯେ କ୍ଷତି ହୁଏ ତାହା ଏଠାରେ ବର୍ଣ୍ଣିତ ହେଲା .—

(୧ ପାକଯନ୍ତ୍ରରେ—ପ୍ରଥମେ ତୁଣ୍ଡରୁ ଅଧିକ ପରିମାଣ ଲାଳ ବହେ । ଏହି ଲାଳ ଯୋଗୁଁ ଅନେକ ଥର ଛେପ ପକାଇବାକୁ ହୁଏ । ତଦ୍ଦ୍ୱାରା ଜୀର୍ଣ୍ଣଶକ୍ତିର ଗୋଟିଏ ପ୍ରଧାନ ଅଙ୍ଗ (ଲାଳ) ନଷ୍ଟ ହୁଏ,ଅତଏବ ଜୀର୍ଣ୍ଣଶକ୍ତି କମିଯାଏ । କେତେକ ଦିନ ପରେ ତୁଣ୍ଡର ଲାଳ ଗ୍ରନ୍ଥି ( Salivary glands ) ଗୁଡ଼ିକ ଶୁଷ୍କ ହୁଏ, ଆଉ ଲାଳ ବହେ ନାହିଁ । ତେବେ ମଧ୍ୟ ଜୀର୍ଣ୍ଣଶକ୍ତି କମିଯାଏ । ଏପରି ଅବସ୍ଥାରେ ତୁଣ୍ଡର ସ୍ୱାଦୁଶକ୍ତି ନଷ୍ଟ ହୁଏ—କୌଣସି ପଦାର୍ଥ ଖାଇ ସୁଦ୍ଧା ତହିଁର ସ୍ୱାଦୁ ପାଇଥିବା ତୃପ୍ତି ହୁଏ ନାହିଁ ।

ଯେଉଁମାନେ ଗୁଡ଼ାଖି, ଦାନ୍ତରେ ଘଷନ୍ତି କମ୍ବା ଖାଆନ୍ତି ଓ ଯେଉଁମାନେ ନାସ, ଚୂନପତ୍ର ପ୍ରଭୃତି ତୁଣ୍ଡରେ ପକାନ୍ତି, ସେମାନଙ୍କର ଦାନ୍ତ ଓ ଜିଭ ପ୍ରଭୃତି କିପରି ଅସୁନ୍ଦର ଦେଖାଯାଏ ଓ ସେମାନଙ୍କ ତୁଣ୍ଡରୁ ଏକପ୍ରକାର କଷାକ୍ତ ଦୂଷିତ ବାୟୁ ବାହାରେ । ଦାନ୍ତମୂଳରେ ପୂଜ ଓ ରକ୍ତ ପ୍ରଭୃତି ରହି ଦୁର୍ଗନ୍ଧ କରେ । ସେମାନଙ୍କ ତୁଣ୍ଡରେ ଅରୁଚି ହୁଏ ଓ କ୍ଷୁଧାଶକ୍ତି କମିଯାଏ । ସେମାନଙ୍କର ଦାନ୍ତଗୁଡ଼ିକ ଅତି ଶୀଘ୍ର ପଡ଼ଯାଏ କମ୍ବା ବାରମ୍ବାର ଦନ୍ତରୋଗରେ ସେମାନେ ପୀଡ଼ିତ ହୁଅନ୍ତି ।

ଝାଡ଼ା ଫେରିବା ପୂର୍ବରୁ କେତେକ ଲୋକ ଦାନ୍ତରେ ଗୁଡ଼ାଖୁ ଲଗାନ୍ତି କିମ୍ବା ପିକା ବିଡ଼ି ପ୍ରଭୃତି ଖାନ୍ତି। ତଦ୍ଦ୍ୱାରା ପ୍ରଥମାବସ୍ଥାରେ ଉତ୍ତମରୂପେ ଝାଡ଼ା ସଫା ହୁଏ, କିନ୍ତୁ ପରେ ସେମାନେ ଏଇ କୁଅଭ୍ୟାସ ନ କଲେ ସେମାନଙ୍କର ଆଦୌ ଝାଡ଼ା ହୁଏ ନାହିଁ।

ଯେଉଁ ମାନଙ୍କର ପେଟରେ ଦୂଷିତ ବାୟୁ ରହେ, ସେମାନେ ତିଡ଼ି ବା ପିକା ଖାଇଲେ ବିଶେଷ ଅଗ୍ରାମ ପାନ୍ତି; କିନ୍ତୁ ଉତ୍ତମ ଔଷଧ ଥାଇଁ ଥାଇଁ ଧୂଆଁପତ୍ରର ଅପକାର ଜାଣିବା ସତ୍ତ୍ୱେ ତାହାକୁ ବ୍ୟବହାର କରିବା ଅନୁଚିତ।

(୨) ରକ୍ତ ଓ ହୃତ୍ପିଣ୍ଡରେ—ସ୍ନାୟୁ ଗୁଡ଼ିକ ଉତ୍ତେଜିତ ହେବାରୁ ଧୂଆଁପତ୍ର ବ୍ୟବହାର କଲା ମାତ୍ରକେ ଦେହର ରକ୍ତଚାପ ( Blood Pressure) ବୃଦ୍ଧି ହୁଏ ଓ ନାଡ଼ିର ଗତି ମନ୍ଦ ହୁଏ, କିନ୍ତୁ କେତେକ ସମୟ ପରେ ( ସ୍ନାୟୁଗୁଡ଼ିକ ଦୁର୍ବଳ ହେବା ମାତ୍ରକେ) ରକ୍ତଚାପ ହଠାତ୍ କମ ହୁଏ। ନାଡ଼ି ପ୍ରଥମେ ଧପ୍ ଧପ୍ ହୋଇ ପରଶେଷରେ ବନ୍ଦ ହୁଏ। ଧୂମ୍ରସେବୀମାନଙ୍କର ହୃତ୍ପିଣ୍ଡ କ୍ରମଶଃ ଦୁର୍ବଳ ଓ ରୁଗ୍ଣ ହୁଏ ଏବଂ ରକ୍ତରେ ଥିବା ନାଲି କଣିକା ଗୁଡ଼ିକର ବିଶେଷ କ୍ଷତି ହୁଏ। ଏହି କାରଣରୁ ସେମାନଙ୍କର ଦେହ କେତେକାଳ ପରେ ପାଣ୍ଡୁର ବା ସିଠୂଆ ଦିଶେ।

(୩) ଫୁସ୍‌ଫୁସ୍ ବା ଶ୍ୱାସନାଳୀରେ— ସାମାନ୍ୟ କାଶ ବା ଶ୍ୱାସରୋଗ ହେଲେ କେତେକ ଲୋକ ପିକା, ହୁକ୍କା ବା ବିଡ଼ି ଖାନ୍ତି । ତଦ୍ୱାରା ସେମାନଙ୍କର ରୋଗ ପ୍ରଥମରେ ସାମାନ୍ୟ ଉପଶମ ହୁଏ ସତ, କିନ୍ତୁ ପରେ ସେମାନଙ୍କଠାରେ ଅତି ଭୟାନକ କଫ, ଶ୍ୱାସ ଓ କାଶ ପ୍ରଭୃତି ଜାତ ହୁଏ । ସେମାନଙ୍କର ଗଳା ବା ଘଣ୍ଟା ମଧ୍ୟସ୍ଥ କୋମଳ ମାଂସ ନିକୋଟିନ ଇତ୍ୟାଦିଦ୍ୱାରା ଦୂଷିତ ହୋଇ ବିଶେଷ ଯନ୍ତ୍ରଣା ହୁଏ । ଏହି ଅବସ୍ଥାରେ ଲୋକମାନେ ଅନ୍ୟ କୌଣସି ରୋଗଦ୍ୱାରା ଦୁର୍ବଳ ହେଲେ ସେମାନଙ୍କର ଫୁସ୍‌ଫୁସ୍‌ରେ କ୍ଷୟ ରୋଗ ବା ରାଜଯକ୍ଷ୍ମା ଜାତ ହୁଏ ।

(୪) ଚକ୍ଷୁରେ— ଅକ୍ଷି ଡୋଳା ମଧ୍ୟରେ ଥିବା ସ୍ନାୟୁଗୁଡ଼ିକ ଧୂଆଁପତ୍ରର ନିକୋଟିନଦ୍ୱାରା ବିଶେଷରୂପେ କ୍ଷତିଗ୍ରସ୍ତ ହୁଏ । ଏଣୁ କେତେ-କାଳ ପରେ ଧୂମ୍ରସେବୀମାନେ ଅନ୍ଧ ହୁଅନ୍ତି ବା ସେମାନଙ୍କର ଦୃଷ୍ଟିଶକ୍ତି କ୍ରମଶଃ ନଷ୍ଟ ହୁଏ ।

ମସ୍ତିଷ୍କରେ—ମନୁଷ୍ୟର ମସ୍ତିଷ୍କରେ ସ୍ନାୟୁ ସମୂହର ପ୍ରଧାନ କେନ୍ଦ୍ର ଅଛି । ଧୂଆଁପତ୍ରକୁ ଯେ କୌଣସି ପ୍ରକାରେ ବ୍ୟବହାର କଲେ ସୁଦ୍ଧା ଏହି ସ୍ନାୟୁ କେନ୍ଦ୍ରକୁ ନିକୋଟିନ ବିଷ ଦୂଷିତ କରେ ।

ତେଣୁ ଧର୍ମସେବୀମାନେ ବିକୃତମସ୍ତିଷ୍କ ବା ପାଗଳ ହୁଅନ୍ତି । ସମୟରେ ସେମାନଙ୍କର ହିତାହିତ ଜ୍ଞାନ ଲୋପ ହୁଏ ଏବ ସେମାନେ ଚୌର୍ଯ୍ୟବୃତ୍ତି କରନ୍ତି କିମ୍ବା ନିଜ ଆତ୍ମୀୟ ବା ଯେ କୌଣସି ଲୋକର ପ୍ରାଣ ଓ ଧନ ନଷ୍ଟ କରନ୍ତି ।

ଉପର୍ଯ୍ୟୁକ୍ତ କେତୋଟି ପ୍ରଧାନ ଅନିଷ୍ଟ ବ୍ୟତୀତ ଧୂଆଁପତ୍ରକୁ ଖାଇବାଦ୍ୱାରା ଦେହର ମାଂସ ପେଶୀଗୁଡ଼ିକ ଶିଥିଳ ହୁଏ, ଦେହର କାନ୍ତି ବା ଜ୍ୟୋତି ବଦଳିଯାଏ ଏବଂ ସମୟରେ ଅସ୍ୱାଭାବିକ କାନ୍ତି, ପୋଖରି, ପେଟବ୍ୟଥା ବିଶେଷ ଦୁର୍ବଳତା ପ୍ରଭୃତି ଜାତ ହୁଏ । ଏହି କାରଣରୁ ଧୂଆଁପତ୍ରକୁ ବ୍ୟବହାର କରିବାପାଇଁ ଆମ୍ଭମାନଙ୍କର ଚିକିତ୍ସା ଶାସ୍ତ୍ରରେ ଏକାବେଳକେ ମନା କରାଯାଇଛି ।

ପୂର୍ବେ କୁହାଯାଇଛି ଯେ, ଇଷ୍ଟଇଣ୍ଡିଆ କମ୍ପାନୀର ବଣିକମାନେ ଧୂଆଁପତ୍ରକୁ ଏ ଦେଶକୁ ଆମଦାନୀ କରିବା ପରେ ଆମ ଦେଶବାସୀ ସେହି ପତ୍ରର "ସଦ୍‌ବ୍ୟବହାର" ସେହି ୟୁରୋପୀୟମାନଙ୍କ ଠାରୁ ଶିକ୍ଷା କରିଥିଲେ । ୟୁରୋପ ଗୋଟିଏ ଅତି ଥଣ୍ଡା ଦେଶ । ଏହି ଥଣ୍ଡା କବଳରୁ ରକ୍ଷା ପାଇବା ପାଇଁ ସେଠା ଅଧିବାସୀ ମଦ, ମାଂସ, ଧୂଆଁପତ୍ର ପ୍ରଭୃତି ଖାଦ୍ୟ ଖାନ୍ତି ଓ ସର୍ବଦା କେବଳ ସାହେବୀ

ପୋଷାକ ପିନ୍ଧନ୍ତି, କିନ୍ତୁ ଆମ ଦେଶରେ ସେପରି ଖାଦ୍ୟ କିମ୍ବା ସେପରି ପୋଷାକ ଆଦୌ ଦରକାର ନାହିଁ । ଭାରତ ଗୋଟିଏ ଗ୍ରୀଷ୍ମପ୍ରଧାନ ଦେଶ ଥିବାରୁ ଏଠାରେ ଯେଉଁମାନେ ମଦ, ମାଂସ ଓ ଧୂଆଁପତ୍ର ପ୍ରଭୃତି ବ୍ୟବହାର କରନ୍ତି, ସେମାନଙ୍କ ମଧ୍ୟରୁ ପ୍ରତି ବର୍ଷ ଲକ୍ଷ ଲକ୍ଷ ଲୋକ ରୁଗ୍ଣ ହେଉଥିବାର ଆମ୍ଭେମାନେ ଭାରତର ବଡ଼ ବଡ଼ ଡାକ୍ତରଖାନା ରିପୋର୍ଟରୁ ଜାଣୁ । ଏପରି ଅବସ୍ଥାରେ ଧୂମ୍ରପାନ କରିବା ସଭ୍ୟତାର ଗୋଟିଏ ନିଦର୍ଶନ ବୋଲି ଯେଉଁମାନେ ଭାବନ୍ତି, ସେମାନେ ଜାଣି ଜାଣି ନିଜର ଅମଙ୍ଗଳ କରନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପୂର୍ବ ବର୍ଣ୍ଣିତ ଶାରୀରିକ କ୍ଷତି ବ୍ୟତୀତ ଗୁଣ୍ଡି, ଚୁନପତ୍ର, ହୁକା ଓ ଗୁଡ଼ାଖୁ ପ୍ରଭୃତି ବ୍ୟବହାର କରିବାଦ୍ୱାରା ନିମ୍ନଲିଖିତ ଆଉ କେତୋଟି ଅନିଷ୍ଟ ମଧ୍ୟ ଘଟୁଥିବାର ଆମ୍ଭେମାନେ ଜାଣୁ ।

(୧) **ଆର୍ଥିକ କ୍ଷତି**—ଓଡ଼ିଶାର ଅର୍ଦ୍ଧାଧିକ ଆବାଳବୃଦ୍ଧବନିତା ପ୍ରତିଦିନ ଗୁଣ୍ଡି, ଚୁନପତ୍ର, ବିଡ଼ି, ଗୁଡ଼ାଖୁ ପ୍ରଭୃତି ବ୍ୟବହାର କରନ୍ତି । ଏଥିରୁ ଅଧିକାଂଶ ଓଡ଼ିଶାର ଅଳ୍ପ କେତୋଟି ସହରରେ ଛଅର ହୋଇ ନିତାନ୍ତ ମଫସଲର ବସ୍ତିଅମାନଙ୍କ

ଦ୍ୱାରା ବଢ଼ି ହୁଏ । ସହସ୍ର ମହାଜନମାନେ ମଧ୍ୟ ନିଜନିଜର ଉପକରଣଗୁଡ଼ିକ ଓଡ଼ିଶା ବାହାରୁ ଅଧିକ ମୂଲ୍ୟ ଦେଇ ମଗାନ୍ତି । ଯେ କୌଣସି ପ୍ରକାରେ ଦେଖିଲେ ସୁଦ୍ଧା ଓଡ଼ିଶାର ନିତାନ୍ତ ମଫସଲର ଟଙ୍କା କଉଡ଼ି ଏହି ଗୁଣ୍ଡି, ଗୁଡ଼ାଖୁ ଯୋଗୁଁ ଓଡ଼ିଶାରୁ କ୍ଷୀଣ ହୋଇ ଓଡ଼ିଶା ବାହାରକୁ ଯାଏ । ନିତାନ୍ତ କମ୍‌ରେ ଓଡ଼ିଶାରୁ ପ୍ରତିବର୍ଷ ୩।୪ କୋଟି ଟଙ୍କା କେବଳ ଗୁଣ୍ଡି, ଗୁଡ଼ାଖୁ ପ୍ରଭୃତି ଅନିଷ୍ଟକର ଓ ଅସ୍ୱାସ୍ଥ୍ୟକର ପଦାର୍ଥ ପାଇଁ କ୍ଷୀଣ ହୋଇଯାଏ । ଆର୍ଥିକ କ୍ଷତି ସଙ୍ଗେ ସଙ୍ଗେ ଶାରୀରିକ ସ୍ୱାସ୍ଥ୍ୟ ନଷ୍ଟ ହେଉଥିବା ସତ୍ତ୍ୱେ ଏପର୍ଯ୍ୟନ୍ତ ଏ ଦିଗରେ କୌଣସି ଦେଶହିତୈଷୀ ବିଶେଷ ଦୃଷ୍ଟି ଦେଇ ନ ଥିବା କମ୍ ଆଶ୍ଚର୍ଯ୍ୟର କଥା ନୁହେ !

(୨) **ନୈତିକ କ୍ଷତି**—'ଦେଖା ଶିଖା ଓଡ଼ିଆ' ବୋଲି ଗୋଟିଏ ପ୍ରବାଦ ଅଛି । ପୂର୍ବ କାଳରେ ଓଡ଼ିଶାର ଅଧିବାସୀମାନେ ନିଜର ଆଧ୍ୟାତ୍ମିକ ଶକ୍ତି ଏବଂ ବିଶେଷ ସାହସ ଯୋଗୁଁ ଦେଶ ଦେଶାନ୍ତରରେ ନୌବାଣିଜ୍ୟ କରି ଯେପରି ଖ୍ୟାତି ଲଭିଥିଲେ ଆଜି ସେ ଦୃଶ୍ୟ ଆଦୌ ଦେଖାଯାଏ ନାହିଁ । ତାହା ବଦଳରେ ଓଡ଼ିଶାବାସୀଙ୍କର ନୈତିକ ଦୁର୍ବଳତା ଯୋଗୁଁ ନାନାପ୍ରକାର

କୁଅଭ୍ୟାସ ଓ କୁକାର୍ଯ୍ୟ ଗୁଡ଼କ ଦେଖିବାକୁ ପାଇଁ । ତନ୍ମଧ୍ୟରୁ ଓଡ଼ିଶାର ଅର୍ଦ୍ଧାଧିକ ଲୋକ କେବଳ ପାନ ଧୂଆଁ ପତ୍ର, ଗଞ୍ଜା ଓ ଅଫିମ ପ୍ରଭୃତି ମାଦକ ଦ୍ରବ୍ୟର ପ୍ରଧାନ ଉପାସକ ଥିବାର ଦେଖିଲେ ପ୍ରୋକ୍ତ ପ୍ରବାଦଟି ଓଡ଼ିଶାରେ ଅକ୍ଷରେ ଅକ୍ଷରେ ପାଳିତ ହେଉଥିବାର ସ୍ପଷ୍ଟ ଜଣାଯାଏ । ଏଥିପାଇଁ କହନ୍ତି —

'ଅଫିମା ଟେର ଭାଙ୍ଗୁଆ ଭୋଳ
ଧୂଆଁ ପତ୍ରିଆ ଘରେ କଳି ଗୋଳ !'

ଲୋକେ 'ଶିକ୍ଷିତ' ହେଲେ ନାନା ପ୍ରକାର କୁସଂସ୍କାର ଓ କୁଅଭ୍ୟାସ ଗୁଡ଼ିକୁ ଦୂର କରିବା କଥା । କିନ୍ତୁ ଆମ ଦେଶର ଶିକ୍ଷିତ (ଉଚ୍ଚଶିକ୍ଷିତ) ବାବୁମାନେ ଧୂମ୍ରପାନ ପ୍ରଭୃତି କୁଅଭ୍ୟାସ ଗୁଡ଼ିକୁ ନିଜେ ଅଭ୍ୟାସ କରି ଦେଶର ସ୍ତ୍ରୀ ଓ ବାଳକବାଳିକାମାନଙ୍କୁ ସେହି କୁଅଭ୍ୟାସଦ୍ୱାରା ଦୀକ୍ଷିତ କରନ୍ତି ! ଏହାହିଁ ଓଡ଼ିଶାର ଗୋଟିଏ ଅତି ଆଶ୍ଚର୍ଯ୍ୟ କଥା !

ପ୍ରୋକ୍ତ ଦୁଇଗୋଟି ପ୍ରଧାନ ଦୋଷ ସଙ୍ଗେ ସଙ୍ଗେ ଧୂଆଁପତ୍ରକୁ ବ୍ୟବହାର କରିବା ଦ୍ୱାରା ନାନାପ୍ରକାର ଅତି କଷ୍ଟକର ଓ ଭୟାନକ ରୋଗ ମଧ୍ୟ ଜାତ ହୁଏ । ଏପରି ରୋଗ ମଧ୍ୟରୁ ଯକ୍ଷ୍ମାକାଶ, ମୂର୍ଚ୍ଛା (Epilepsy) ଓ କାନ୍‌ସର (Cancer )

ପ୍ରଭୃତି ପ୍ରଧାନ । ଏକାଧିକ ରୋଗୀ ଚୂନପତ୍ର ବା ଧୂଆଁପତ୍ର ଚୋବାଇ ଖାଇବା ଦ୍ୱାରା ଅତି ମାରାତ୍ମକ ମୂର୍ଚ୍ଛା ରୋଗରେ ପୀଡ଼ିତ ଥାଇ ପରଶେଷରେ ମୁଖ, ପୋଷଣୀ ଓ ଗାଡ଼ିଆରେ ପଡ଼ି ଅକସ୍ମାତ ମୃତ୍ୟୁ ଦ୍ୱାରା ଜୀବନ ହରାଇଥିବା ଏ ଲେଖକ ଜାଣେ ଏବଂ ଏକାଧିକ ମୂର୍ଚ୍ଛା ରୋଗୀ ନିଜର ଏହି କୁଅଭ୍ୟାସ ଛାଡ଼ିବା ସଙ୍ଗେ ସଙ୍ଗେ ସେହି ରୋଗରୁ ମୁକ୍ତି ପାଇଥିଲେ ! ଏପରି ଅବସ୍ଥାରେ ଧୂଆଁପତ୍ରକୁ ଖାଇବାଦ୍ୱାରା ଓଡ଼ିଶାବାସୀଙ୍କର କି ଅମଙ୍ଗଳ ନ ଘଟୁଛି ପାଠକ ମାନେ ବୁଝି ପାରୁଥିବେ ।

**ପ୍ରତିକାର**—ବର୍ତ୍ତମାନ ଏ ଦିଗରେ କଣ କରାଯାଇ ପାରେ ଏହି ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ପ୍ରତ୍ୟେକ ଶିକ୍ଷିତ ଯୁବକ ଯୁବତୀ ନିଜର କର୍ତ୍ତବ୍ୟ ପ୍ରତି ଦୃଷ୍ଟି ଦେବା ଉଚିତ । ଯେଉଁମାନେ ଶିକ୍ଷିତ ବୋଲି ଗର୍ବ କରନ୍ତି, ସେମାନେ ପ୍ରଥମେ ଦେଶର ଏହି "କଳଙ୍କ" ଦୂର କରନ୍ତୁ । ଓଡ଼ିଶାର ଅନେକ ସ୍କୁଲ ଛାତ୍ର ଗୁଣ୍ଡି, ଗୁଡ଼ାଖୁ ଓ ବିଡ଼ି ପ୍ରଭୃତି ବ୍ୟବହାର କରନ୍ତି । ପାନ ସଙ୍ଗେ ଗୁଣ୍ଡି ନ ଖାଇଲେ କିମ୍ବା ଦାନ୍ତକାଠି ବଦଳରେ ଗୁଡ଼ାଖୁ ନ ଘଷିଲେ ସେମାନେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ସ୍କୁଲ ଛାତ୍ରମହଲରେ ଏପରି ଜଘନ୍ୟପ୍ରଥା ଚଳୁଥିବା ସତ୍ତ୍ୱେ କିହାନ୍ତି ମଫସଲମାନଙ୍କୁ ଧୂଆଁପତ୍ର

ବିରୁଦ୍ଧରେ ପ୍ରଚାର କରିବା ସହଜ ବା ସୁବିଧା ନାହିଁ । ଅତଏବ ପ୍ରଥମେ ଓଡ଼ିଶାର ଏହି ସ୍କୁଲ ଛାତ୍ରମାନେ ନିଜର କୁଅଭ୍ୟାସକୁ ଜଳାଞ୍ଜଳି ଦେଇ ତା ପରେ ଓଡ଼ିଶାର ପ୍ରତ୍ୟେକ ପୁର ପଲ୍ଲୀରେ ଧୂଆଁପତ୍ର ବିରୁଦ୍ଧରେ ସଭା ସମିତି ଓ ପ୍ରଚାର କରିବା ଉଚିତ। ଓଡ଼ିଶା ମଫସଲର ନିତାନ୍ତ ଗରିବ ସ୍ତ୍ରୀ ଠାରୁ ଉଚ୍ଚ ଘରର ବହୁ ଝିଅମାନେ ମଧ୍ୟ ଅଲ୍ଲତା ଲ ଗୁଡ଼ାଖୁ ଓ ଗୁଣ୍ଡିର ପ୍ରଧାନ ଭକ୍ତ ଥିବାର ଦେଖାଯାନ୍ତି । ଘରର ପୁରୁଷମାନେ ଇଚ୍ଛା କଲେ ଏକା ଦିନକେ ଏଇ କୁଅଭ୍ୟାସ ନିଜ ଘରର ସ୍ତ୍ରୀମହଲରୁ ଉଠାଇ ଦେଇ ପାରନ୍ତି । ଯଥା ବାଦ ଦେଶର ପ୍ରତ୍ୟେକ ଦୋକାନୀ, ବଣିଆ ଓ ଦାନ୍ତୁଆ-ମାନଙ୍କ ମଧ୍ୟରେ ଧୂଆଁପତ୍ରର ଅପକାରିତା ସମ୍ବନ୍ଧେ ବାରମ୍ବାର ପ୍ରଚାର କରିବାକୁ ହେବ । ଥରେ ଏହି ଅପକାର ଓ ଆର୍ଥିକ କ୍ଷତି କଥା ଜାଣିଲେ ଓଡ଼ିଶାର ଯେ କୌଣସି ମଫସଲ ଏହି କୁଅଭ୍ୟାସକୁ ଅତିବେ ଦୂର କରି ପାରେ—ସନ୍ଦେହ ନାହିଁ ।

ଦେଶର ସରକାରଙ୍କୁ ମଧ୍ୟ ଏଦିଗରେ ବିଶେଷ ବ୍ୟବସ୍ଥା କରିବାକୁ ହେବ । ୬୮ ବର୍ଷ ତଳେ ବୋମ୍ବେ ଓ ମଧ୍ୟପ୍ରଦେଶ ସରକାର ଦେଶରେ ଧୂଆଁପତ୍ରର ବ୍ୟବହାର ବନ୍ଦ କରିବାପାଇଁ ବିଶେଷ ଆଇନ ଜାରି କରିଛନ୍ତି, ତଦ୍ୱାରା ବିଶେଷ ଫଳ

ହୋଇଥିବାର ଜଣାଯାଏ । କିନ୍ତୁ କୌଣସି ଆଇନ ଜାରି ହେବା ପୂର୍ବରୁ ଦେଶର ଶିକ୍ଷିତ ସମାଜ ବିଶେଷତଃ ସ୍କୁଲ ଛାତ୍ରମାନେ ଧୂଆଁ ପତ୍ର ବିରୁଦ୍ଧରେ ପ୍ରଚାର କରିବାପାଇଁ ଚେଷ୍ଟା କଲେ ଏ ଦେଶରୁ ଏହି କୁପ୍ରଥା ଯେ ଅଚିରେ ଦୂର ହେବ—ସନ୍ଦେହ ନାହିଁ ।



**Printed by V. Kar, The U. S. Press, Cuttack.**

# ସବୁଜ ସାହିତ୍ୟ ସମିତିର ଅନ୍ୟାନ୍ୟ ଗ୍ରନ୍ଥ

ତୁ ମୋ ମା—ହବ୍ୟସିଂହ ପାଣିଗ୍ରାହୀ··· ଟ ୧ ୮
ପୂର୍ଣ୍ଣିମା—ସଚ୍ଚିଦାନନ୍ଦ ରାଉତରାୟ··· ଟ ୦ ।୪
ବାସନ୍ତୀ—ନଅ ଜଣ ଲେଖକ ଲେଖିକା ଟ ୧ ୩
ମୁକ୍ତାଗଡ଼ର କ୍ଷୁଧା—କାଳିନ୍ଦୀଚରଣ ପାଣିଗ୍ରାହୀ··· ଟ ୧ ୮
ଚରଭୂମ—ଶାନ୍ତି ମୁଖର୍ଜି— ଟ ୦ ୩
ବୋଝ—କମଳାକାନ୍ତ ଦାସ ଟ ୦ ୩/
ଦେଶର ଡାକ—ହରିଶ୍ଚନ୍ଦ୍ର ବଡ଼ାଲ··· ଟ ୧ ।
ଅମର ଚିତା—କାଳିନ୍ଦୀଚରଣ ପାଣିଗ୍ରାହୀ ଟ ୧ ୮
ପୂଜାରିଣୀ—ମାୟାଧର ମାନସିଂହ··· ଟ ୦ ।/
ଆଶୀର୍ବାଦ—ହରିହର ମିଶ୍ର··· ଟ ୦ ।୪
ଦ୍ୱାଦଶୀ—କାଳିନ୍ଦୀଚରଣ ପାଣିଗ୍ରାହୀ··· ଟ ୦ ୫୪
ସବୁଜ କବିତା—ପାଞ୍ଚ ଜଣ ଲେଖକ··· ଟ ୦ ୫
ପାଥେୟ—ସଚ୍ଚିଦାନନ୍ଦ ରାଉତରାୟ··· ଟ ୦ ।୪
ତୃଣଗୁଚ୍ଛ—ଅନନ୍ତପ୍ରସାଦ ପଣ୍ଡା··· ଟ ୦ ୩
କୋଣାର୍କ—ଶରତ୍ ଚନ୍ଦ୍ର ମୁଖର୍ଜି··· ଟ ୦ ୪
ସୌମ୍ୟା—କାଳିନ୍ଦୀଚରଣ ପାଣିଗ୍ରାହୀ··· ଟ ୦ ।
ସମାଲୁଞ୍ଜ—ଶରତ୍ ଚନ୍ଦ୍ର ମୁଖର୍ଜି··· ଟ ୦ ୩
ଶଙ୍ଖସପ୍ତା—ଚନ୍ଦ୍ରମଣି ମହାନ୍ତି··· ଟ ୧ ୮
ପଞ୍ଚପୁଷ୍ପ—ଶରତ୍ଚନ୍ଦ୍ର ମୁଖର୍ଜି— ଟ ୦ ।/

ପ୍ରାପ୍ତିସ୍ଥାନ—

ସମ୍ପାଦକ, ସବୁଜ ସାହିତ୍ୟ ସମିତି, କଟକ